# ବାଗ୍‌ଦେବୀ

ଟିକଲି ଯୁବରାଜ

ଶ୍ରୀ ଶ୍ରୀ ଲକ୍ଷ୍ମୀନାରାୟଣ ଦେବ,

କାବ୍ୟବିନୋଦ,

**M.R.A.S, M.B.D.M**

ବିରଚିତ

(ପ୍ରଥମ ସଂସ୍କରଣ)

Digitized by srujanika@gmail.com



SRI SRI L. N. DEB, KABYABINODE,
M.R.A.S., M.B.D.M.

*Jubraj of Tekkali.*

Digitized by srujanika@gmail.com

AN ODE

*on*

# "Goddess of Learning"

*is*

**RESPECTFULLY DEDICATED**

**to**

His Excellency the Right Hon:

Viscount Goschen of Hawkhurst

G. C. I. E., G. B. E., V D.

Governor of Madras.

**as an humble token of**

**the author's loyalty**

*to*

THE BRITISH THRONE

—:O:—

Digitized by srujanika@gmail.com

# ସାସ୍ତେଦସା

ବନ୍ଦେ ଭଗବତୀ ମାତଃ ସୁଜ୍ଞାନ ଦାୟିନୀ !
ବ୍ରହ୍ମମୟି ଦେବି ବୀଣା ମଣ୍ଡିଳ ବାସିନି !

ଅଜ୍ଞାନତା ଅନ୍ଧକାର ବିନାଶନେ ତବ ।
ଅପାର ମହିମା ମାତଃ କରେ ଅନୁଭବ ॥

ଯାହା ପ୍ରତି ନାହିଁ ଦେବି ତୁମ୍ଭର କରୁଣା ।
ମାନବ ସମାଜେ ତାର ମାନ ଖଥାତ ତୃଣ ॥

ଲବ ମାତ୍ର ଦୀନଜନେ ତବ କୃପା ଲଭି ।
ମୂର୍ଖ ମୂଢ଼ ସଜ୍ଜନରେ ପଦ ଲଭେ କବି ॥



Digitized by srujanika@gmail.com

ଅତୁଲ ଅମର ନାମା ଜଗତ ବିଦିତ ।
କବି ଗୁରୁ କାଳିଦାସ ହେଲେ ସମ୍ମାନିତ ॥

—୦❋୦—

ଯାହାଙ୍କ ବିଦେଶେ ଦେଶେ ପୁଣ୍ୟମୟ ନାମ ।
କରିଛି ଶାଶ୍ୱତ ଶୁଭ ସୁପବିତ୍ର ଧାମ ॥

—୦❋୦—

ଜୟଦେବ କବିବରଗଣ ହୃଦହାର ।
ରଖି ଯାଇଛନ୍ତି ଏଥି ଅକ୍ଷୟ ଭଣ୍ଡାର ॥

—୦❋୦—

ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତ ଆବର ।
ବଳଦେବ କବିସୂର୍ଯ୍ୟ କବି ଧୁରନ୍ଧର ॥

—୦❋୦—

ଉତ୍କଳ ଜନନୀଙ୍କର ଶାଶ୍ୱତ ପ୍ରଣୟ ।
ସୁଭାଜିକ ମାତୃଭାଷା ପରିପୁଣାଶୟ ॥

Digitized by srujanika@gmail.com

ଅଦ୍ୟ ଅମରଧାମେଁ ଦେବ ସମାଜରେ ।
ଯାହାଙ୍କ ଆସନ ପ୍ରତିଷ୍ଠିତ ଗୌରବରେ ॥

—○✻○—

ସେ ଅମର କବିବର ଉପେନ୍ଦ୍ର ଭଞ୍ଜ ।
ସାମନ୍ତସିଂହାର ଅବା କବିକୁଳ କଞ୍ଜ ॥

—○✻○—

ବାସର ନାୟକ ଭକ୍ତ ହୃଦୟ ମୋହନ ।
ଜଗନ୍ନାଥ ବଳରାମ ଯେ କବି କେତନ ॥

—○✻○—

ଫକୀରମୋହନ ଅବା କବିକୁଳ ମଣି ।
ତବ କୃପା ବଳେ ହେଲେ ବିଖ୍ୟାତ ଧରଣୀ ॥

—○✻○—

ମାତଃ ତବ କୃପୀୟୂଷ କଟାକ୍ଷକୁ ଲଭି ।
ଏଉତ୍କଳଦେଶେ ଦେବି ହେଲେ କେତେ କବି ॥

Digitized by srujanika@gmail.com

କବିତା କୁସୁମ ଦାମ ଗ୍ରନ୍ଥି ସଂସ୍ଥନରେ !
କରାଇ ଅଛନ୍ତି ସ୍ଫୂର୍ତ୍ତି ସୌରଭ ଦେଶରେ

—୦*୦—

ଭାରତ ରଚନା କାଳେ ବ୍ୟାସଙ୍କ ବଦନ,
କବିତା ସ୍ୱରୂପା ଅବତୀର୍ଣ୍ଣା ତବ ତନୁ ।

—୦*୦—

ଭକ୍ତ କବି ଜନଙ୍କର ଶ୍ରୀମୁଖ ସାରସ ।
ତୁମ୍ଭର ପ୍ରସାଦ ହେତୁ ଲଭଇ ହରଷ ॥

—୦*୦—

ସୃଷ୍ଟି ବିଧାନ ନିଦାନ ମାତଃ ଶଶୀହାସି !
ଭକ୍ତେ ପାଳନ କର କରୁଣା ପ୍ରକାଶି ॥

—୦*୦—

ତବ ଅନୁକମ୍ପା ବିନା ମାନବେ ନରହି !
ନ ହୁଅଇ ନିସଂଶୟ ଅମର ମହିରେ ॥

Digitized by srujanika@gmail.com

# ବାଗ୍‌ଦେବୀ

ଏଦେଶୁଁ ଗୋ ବାଣୀ ଦେବି ଉପାସନା ତବ ।
କରିବାରେ ନିରନ୍ତର ନିଯୁକ୍ତ ମାନବ ॥

—०✻०—

ବିଶୁଦ୍ଧ ଚରିତ ତବ ଏ ଭବେ ପୂରିତ ।
ନିଶ୍ଚୟ ଏ କଥା ଅଛି ମାନବେ ବିଦିତ ॥

—०✻०—

ତବ ଉପାସନା ଶୂନ୍ୟ ଜନ ଏ ସଂସାରେ ।
ଅପଦସ୍ଥ, ଅବିଦିତ ଜଗତେ, ସଂସାରେ ॥

—०✻०—

ତୁମ୍ଭର ସେବାରେ ଲାଭ ଦେଶର ଉନ୍ନତି ।
ଅନ୍ୟଥା ମୋଚନ କଷ୍ଟ ଏହାର ଦୁର୍ଗତି ॥

—०✻०—

ପୃଥ୍ୱୀରେ ପ୍ରଚଳନ୍ତି ଯେତେରୂପ ଭାଷା ।
ହେବା ତୁମ୍ଭ ବିଭୂଷଣ ହେବା ଅଭିଳାଷା ॥

ନବ କିସଲୟ ଦୂଲ ଯୋଗେ ଶୋଭମାନ ।
ବସନ୍ତ ସମ୍ରାଟ ଋତୁ ଦେବଙ୍କ ଆସ୍ଥାନ ॥

—୦✽୦—

ସୁରସେବ୍ୟ ସମୁଜ୍ଜ୍ୱଳ ସୁମନ ସଙ୍କୁଳ ।
ପ୍ରଫୁଲ୍ଲିତ ବନରାଜି ଯହିଁ ତହିଁ ତୁଲ ॥

—୦✽୦—

ରଞ୍ଜିତ ବିବିଧ ଧାତୁ ଅଭ୍ରଙ୍କଷ ଚୂଳ ।
ଗିରିମାଳା ସିଦ୍ଧାଶ୍ରମ ଯେ ସ୍ଥାନ ସଙ୍କୁଳ ॥

—୦✽୦—

ମୁକୁତା ମାଳିକା ନିଭ ଗିରି ନଦୀଙ୍କର ।
ନିର୍ମଳ ନିର୍ଝର ଯହିଁ ବିରାଜେ ସୁନ୍ଦର ॥

—✽—

ସେହି ଗିରିବ୍ରଜମାନ ସ୍ୱସ୍ଥାନରେ ଶୋଭିତ ।
ଅନନ୍ତ ଆକାଶ ପଟେ ଯଥା ଜଳଦ ॥

Digitized by srujanika@gmail.com

ସମଗ୍ର ସାମ୍ରାଜ୍ୟର ବିପୁଳା ଅବନୀ ।
ନାନାବିଧ ଶସ୍ୟପୂର୍ଣ୍ଣା ଶ୍ୟାମଳ ବରଣୀ ॥

—୦❋୦—

ଜନନୀଗୋ ବର୍ତ୍ତମାନ ତୁମ୍ଭର କରୁଣା ।
କେଉଁ ଅପରାଧେ ହେଲା ଉତ୍କଳରେ ଊଣା ॥

—୦❋୦—

ଉପହାର ଦାନେ ନାହିଁ ମୋର ଶକ୍ତି ଧନ ।
କରନ୍ତୁ କରୁଣା ମାତ୍ର ଏହି ନିବେଦନ ॥

—୦❋●—

କି ସ୍ତୁତି କରିବି ମାତଃ ନାହିଁ ବାକ୍ୟବଳ ।
ତୁମ୍ଭର କରୁଣା ମାତ୍ର ଜୀବନ୍ତ ସମ୍ବଳ ॥

—୦❋●—

ପ୍ରଭାକର ଦେବୀଙ୍କର ଅର୍ଚ୍ଚନା କାଳେ ।
ଦୀପ ଉପଗ୍ରହ ଦାନ ସଙ୍କାଶ, ସୁଭାଲେ ॥

ପୁଷ୍ପ ବନସ୍ଥ, ଧନେ କମଳା ଅର୍ଚ୍ଚନ ।
ବରୁଣ ହେବଙ୍କୁ ଅର୍ଘ୍ୟ ସମ୍ବୁଜଳ ।।

—୦✻୦—

ଜଳାଞ୍ଜଳି ଦାନେ ଯଥା ସାଗର ତର୍ପଣ ।
ତୁମ୍ଭଠାରେ ମୋର ସ୍ତବ ହୋଇବ ତେସନ ।।




Digitized by srujanika@gmail.com

